# ଗୋପବନ୍ଧୁ ବିୟୋଗେ ।













ସରୋଜିନୀ ଚୌଧୁରୀ

ମୂଲ୍ୟ ୪ ୦ /

"ଦିଅ ଗୋ ଦୁଃଖ ଦିଅ ସନ୍ତାପ
ସବୁ ସହିବ ହୃଦୟ ଥିର ।
ଯଦି ଅଶ୍ରୁ ସଲିଳ ଧୌତ ହୃଦୟେ
ରୁହ ଗୋ ଦିବସ ଯାମି ।"

# ପଣ୍ଡିତ ଗୋପବନ୍ଧୁ ଦାସ ।

ପ୍ରଥମ ଅଷାଢ଼େ ମେଘ ଧରଣୀର ପୂର୍ବଦ୍ୱାରେ ଆସି
ବଜାଇଲା ବଜ୍ରଭେରୀ, ହେ ସାଧକ ! ଆଜ୍ଞୁ କହଗୋ ଆସି
ଅଭୟ ବରଦରୂପେ, ଦେଖା ଦେବ ନାହିଁ ମାତୃପାଶେ ?
ଦୂରବରେ ଯଥା ଗ୍ରାମବାସୀ-ହାସି 'ବନ୍ଧ' ପ୍ରାଣ ନାଶେ ।
ଦେଉଥିଲେ ଦେଖା ଭୀମ, ମାତୃ ପ୍ରାଣ ପୁଲକେ ନଚାଇ
ଦୀନା ଅନାଥିନୀ ବେଶେ ମା ଉତ୍କଳ ରୋଦନେ ଅନାଇ ।
କାହାକୁ ଖୋଜନ୍ତି ଆଜ ? ଗଭୀର ନିଶ୍ୱାସ ଯନ୍ତ୍ର ସ୍ୱରେ
ଊର୍ଦ୍ଧ୍ୱେ ଅଧେ ଗୃହରନ୍ଧ୍ରେ ପ୍ରତି ଅନ୍ଧସନ୍ଧି ଶୂନ୍ୟ ଘରେ ।
ସଜଳ ଜଳଦ ଛାୟା-ଶୀତଳ ସୁନ୍ଦର କୁଞ୍ଜବନେ
ଛୁଟୁଥିଲା ବକୁଳର ଗନ୍ଧବନ୍ଧ ପାଗଳ ପବନେ ।
ପଠାଇ ନିମନ୍ତ୍ରି ମାଳା ଦେଉଥିଲେ ରାଜଟୀକା ଭାଲେ
ଭେକର ଡମ୍ବରୁ ସହ ଝିଲ୍ଲି ବୀଣା ବାଜେ ଉଚ୍ଚ ତାଳେ ।
ଶୁଭ ନୀଳାଞ୍ଜନ ତବ ପାଦେ ଡାଳେ ସେ ଗଙ୍ଗାଶିଉଳୀ
କେକା ଛଳେ ତୂର୍ଯ୍ୟଧ୍ୱନି କରୁଥିଲା ଶିଖିଯୂଥକୁଳ ।
ଏଣିକି ବିରହେ ତବ ବ୍ୟାକୁଳିତ ଛିନ୍ନ ପତ୍ର ଡାଳେ
ହାହାକାରେ ଗନ୍ଧ ବୋଝ ଧାଉଁ ଥିବ ବାୟୁ ଅସମ୍ଭାଳେ ।
ଦୁଃଖେ ବୀଣା ଝଙ୍କାରବ ଶୁଖିଯିବ ଝରି ଫୁଲ ତଳେ
ସଯତନେ ବସାଇଣ ନିଜ ଫୁଲ୍ଲ ହୃଦୟ ଦଳେ ।

ଜନନୀ ଉତ୍କଳେ ପୂଜ ନିତ୍ୟ ନବ ଉପଚାରେ ଗାନେ
ଅନାଗ୍ରତ ଲୁବ୍ଧ କ୍ରୂର, ହିଂସା, ଦ୍ୱେଷ, ଛଳ, ଅକଲ୍ୟାଣେ ।
ହାଣ ଅଗ୍ନିବାଣ ମାରି ଅକୁଣ୍ଠିତେ ସଚେତନେ ସରୋଷେ
ଦୁଃଖୀ ଦୁଃଖେ ସିକ୍ତ ସଦା ଅକ୍ଷି ତବ, ଦାନ ଗୋ ସନ୍ତୋଷେ ।
ତୁମ୍ଭେ ବୀଣା ତୁମ୍ଭେ ବାଣ, ନନ୍ଦ, ଗଡ, ମହାର, ବଜ୍ର
ତନ୍ତ୍ରୀ ଯନ୍ତ୍ରୀ ଏକାଧାରେ ଥିଲ ତୁମ୍ଭେ ଜାଣେଁ ଶକ୍ତିଧର !
ହେ ବସନ୍ତ-ଦୂତ ! ତବ ସୁମଧୁର କଳକଣ୍ଠ ସ୍ୱର
ପଞ୍ଚମେ ଲହରୀ ତୋଳି ଭରୁଥିଲା ବାଣୀର ଅମୃତ ।
ତବ ବଜ୍ରନାଦେ କମ୍ପେ ଉଠୁଥିଲା ରାଜ ସିଂହାସନ
ସ୍ନେହ ପ୍ରଲେପନ ଦାନେ କର ଦୁଃଖୀ ଯାତନା ହରଣ ।
ଦୁଃଖିନୀ ବିଧବା, ଦୀନ, ଅନାଥ ଆତୁର ମର୍ମ ବାଣୀ
ଦୃଢ଼ ଗୈରବ ଗାଥା ଅନାଗତ ଅଶାର କାହାଣୀ ।
ନିଜର ନିପୁଣସ୍ୱରେ ମୋହିତ କରାଇ ସର୍ବ ଦଳେ
ବେଳେବେ କରୁଣେ ବେଳେ ଗର୍ଜି, ପ୍ରକାଶ ସଙ୍ଗୀତ ଛଳେ ।

କଟାଇଲ ଶ୍ରାବଣର ଘନଘୋର ଅନ୍ଧାରରଜନୀ
ବନ୍ଦୀ ହାତେ ପଥ ପ୍ରାନ୍ତେ ଭୀତଜନେ ଦେଖାଇ ସରଣୀ ।
ଦେବ ଗୃହେ ଛନ୍ଦ କଣ୍ଠେ ଯେଉଁ ଗୀତ କରିଲ ଗାୟନ
ଝଙ୍କାରିତ ସେହି ସ୍ୱର ଯୁଗେ ଯୁଗେ କରିବ ବପନ
ନବ କାଲ ନବୀନ ପଥିକ, ଅଭିସାର ମାରଗେ ନୀରବେ
ଶୁଣିଥିବେ ନିଃଶଙ୍କରେ ସହଜେ ସଧୀରେ ସୁଗୌରବେ
ତବ କଣ୍ଠେ ଜୟମାଲ୍ୟ ଯହିଁପାଇଁ ଚହିଲା ଏପାରେ
ତାର ସ୍ନିଗ୍ଧ ମଣି-ଆଭା ଅନାଗତ ଯାତ୍ରିଙ୍କୁ ଅନ୍ଧାରେ
ସାହା ହେବ ସଙ୍କଟରେ ପ୍ରିୟତମ ମିଳନର ପଥେ ।
ସୁଦକ୍ଷ ନିର୍ଭୀକ ! ତେଣୁ ପୂର୍ଣ୍ଣ କଲ ଅଗ୍ରୁ ମନୋରଥେ

ସ୍ୱ ବ୍ରାହ୍ମଣ ବ୍ରହ୍ମଗୃସ୍ୱ !

ବ୍ରହ୍ମରେ ନୟୃତ ରଶ୍ମି ଚନ୍ଦ୍ର

ସେବୁଥିଲ ଜନନୀ ଉତ୍କଳେ ବୃଦ୍ଧି ବ୍ରହ୍ମେ ସାରବନ୍ତ •
ଧ୍ୟାନ ଜ୍ଞାନ ରଖିତାର ପାଦପଦ୍ମେ, ତାହାର ଆଦେଶ
ଅନୁକ୍ଷଣ ଖଟେ ଯେ ତାହାର ପ୍ରୀତି ମନ୍ଦର ଆବେଶେ
ପାଇଛୁ ତୁମ୍ଭଙ୍କୁ ବନ୍ଧୁ ! ମିଳନର ଶୁଭ ଅବସରେ
ଉତ୍ସବ ବାସରେ ଯେବେ, ପୂର୍ଣ୍ଣିକର ହୃଦୟ ପାତ୍ରରେ
ତବପୁଣ୍ୟେ ତବ ପ୍ରେମେ ମଧୁବାକ୍ୟେ ଶ୍ରଦ୍ଧାରେ ସୌଜନ୍ୟେ
ପୂତ ଦୀପ୍ତ ରୂପେ ଓ ବ୍ୟକ୍ତିରେ ଶୁଣି ସ୍ନିଗ୍ଧ ଶୁଦ୍ଧ ଦୈନ୍ୟେ
କ୍ଷଣେ କ୍ଷଣେ ପଡ଼େ ମନେ ଆଜ ଗୋ ତୁମ୍ଭର ସ୍ନେହ ବାଣୀ ।
ପୁଣି ମନେ ପଡ଼ୁଅଛୁ, ଅକସ୍ମାତ କଠୋର କାହାଣୀ
ତୁମ୍ଭର ପଞ୍ଚତ୍ୱ ସ୍ମୃତି ମ୍ଳାନ କରି ଦଏ ହୃଦତଳ
ପ୍ରତ୍ୟେକ କଥାର ଠାଣି ନୟନୁ ବହାଏ ଅଶ୍ରୁଜଳ

ସହସା ସକାଳବେଳେ ଶୁଣିଲୁ ଉତ୍କଳ ଶିରୋମଣି
ପରପାରେ କଲେ ଯାତ୍ରା, ଅନାଥିନୀ ଉତ୍କଳ ଜନନୀ
ପଶ୍ଚରେଁ ତୁମ୍ଭଙ୍କୁ ଆଜ, କେଉଁ ଗୁଣୀ ଗାହିନ୍ତା କ ଗାନ
ମଧୁର କ ଏତେ ? ଯହିଁ ପସ୍ୱରୁତ ଧରଣୀ ଅହ୍ୱାନ
ଅମର୍ତ୍ତ ମନ୍ଦାର ଆଜ ଶୋଭୁଛି ତୁମ୍ଭର କମ୍ବୁକଣ୍ଠେ
ଦେବ ବାଳା ବନ୍ଧନେଲେ ଅମର ଭୁବନ ଉପକଣ୍ଠେ
ତାଙ୍କ ସଙ୍ଗେ ଆନତବଦନା ବଧୂ କ ଅଜଣା ଭାଷେ
ଉଚ୍ଚାର ବନ୍ଦନା ଗୀତ ଅର୍ଘ୍ୟ ଦାନେ ତୁମ୍ଭଙ୍କୁ ସମ୍ଭାଷେ
ମିଳନ ଆନନ୍ଦ ତାର, ତାର ଦୀର୍ଘ ବିରହର ବ୍ୟଥା
ମୋର ପ୍ରାଣେ ଦଏ ଆଣି କେ ଜାଣି କ ଅପୂର୍ବ ବାରତା

ନାଚେ ପ୍ରାଣ ଶ୍ରାବଣର ବିକ୍ଷୋଭିତ ଉତ୍ତାଳ ତରଙ୍ଗେ
ମୋହେ ଫାଲ୍ଗୁନର ଦୋଳ ପୂର୍ଣ୍ଣିମାର ଅତର ସୁରଙ୍ଗେ ।
ସେ ବିଦାୟ ମିଳନର ବିଷାଦ ଆନନ୍ଦଭରା ଛବି
ପ୍ରଦୋଷେ ନିଶାନ୍ତେ, ପ୍ରାତେ ଫୁଟିଉଠେ ହୃଦପଟେ
କବି !

ଅଚିହ୍ନା ଜନର ଦେଖା ସେଥିସଙ୍ଗେ ପାଏଁ ବାର ବାର
ଥରି ଉଠେ ପ୍ରାଣ ମୋର, ଖସି ପଡ଼େ ହୃଦୟରୁ ଭାର
ଅଛି ପୁଣି ଦେଖା ତାର ପାଇନି ବିଶେଷେ ଯେଉଁ କାଳେ
ତୁମ୍ଭର ପ୍ରୟାଣ ବାର୍ତ୍ତା ଶୁଣିଲି ସାଗର ପରପାରେ,
ଟିକି ଲୁଚି ଦେଖା ଯେବେ ହେବ ଧରଣୀର ସେ ପ୍ରାନ୍ତରେ ।
ନ ଜାଣେ ସେ କେତେ ଦିନେ ଅଦୂରଭବିଷ୍ୟେ ଯୁଗାନ୍ତରେ,
ଜାଣେ ନାହିଁ କେତେବେଳେ, ଫୁଲ ଝରି ମଧୁ ନିଶାନ୍ତରେ ।
ନିଶାଣ ଉଡ଼ାଇ ଯେବେ ଉଠେ ଝଡ ବୈଶାଖୀ ସନ୍ଧ୍ୟାରେ,
ଘନ ଘୋରେ ଗର୍ଜେ ମେଘ ଡ଼ୁବେ ଧରା ବର୍ଷା ଅନ୍ଧକାରେ ।
କୁହେଳୀ ଓଢ଼ଣା ତଳେ ମ୍ଳାନମୁଖୀ ମୂର୍ଚ୍ଛିତା ଧରଣୀ,
କଲ୍ଲୋଳିତ ଫଲ୍ଗୁତଳେ ଅବା ସୁପ୍ତ ଅନ୍ଧାର ରଜନୀ ।
ଜାଣେ ନାହିଁ କେତେବେଳେ ଜାଣେ ଦିନେ ପାଇବି ମୁଁ ତାକୁ
ପୁଣି ଦେଖା ହେବ ତ ଗୋ ପ୍ରାଣ ଲୋଡ଼େ ଯେରୂପେ ଯାହାକୁ
ହେ ଅମର୍ତ୍ତ୍ୟ ପ୍ରବାସି !
ସେ ଧାମେ ଅଛନ୍ତି ମରତର
ସ୍ନେହ, ପ୍ରୀତି ଲଜ୍ଜା ଭୀତି ଦୈନ୍ୟ ପ୍ରେମ ନୂତନ ସକଳ,
ସ୍ପନ୍ଦହୀନ ନିଥର ନୀରବ ଅବା ଶୁଦ୍ଧ ସେହି ଦେଶ ।
କେଉଁ ରୂପେ ଦିଏ ଦେଖା ? ସେଥିକି କାମ୍ୟର ସବୁ ଶେଷ ?
ଆଶା କରେଁ ଦରଶନ ପାଇବି ମର୍ତ୍ତ୍ୟେ ଥିଲ ଯେସନେ ବୀର,
ସବଳ, ସଂଯତ, ଦୀପ୍ତ, ସାହସି, ପ୍ରଫୁଲ୍ଲ, ନମ୍ର, ଧୀର ।

# ଗୋପବନ୍ଧୁ ବିୟୋଗ

ନଗ୍ରଶ ଲୁଣ୍ଠିତ ଶିର, ଭାଳେ ମନେ ମନେ,
ଦରିଦ୍ର ଶିକ୍ଷାର୍ଥୀ, ଏବେ ଆଦର୍ଶ ଗଠଣେ ।
ମନ ପ୍ରାଣ ଲଗାଇ କେ କରିବ ଯତନ,
ଆଜଠାରୁ ବିଦ୍ୟା ମୋର ହେବ ସମାପନ !
ଚିର ତୃଷାତୁର ମରୁ ବକ୍ଷ ପ୍ରାନ୍ତେ ଥିଲା ,
ଗୋଟିଏ ନିର୍ଝର-ଶୁଦ୍ଧ ଅଜସ୍ର ଝରିଲା ।
ସେହି ସୁଧାପାନେ ବଳୀ କ୍ଷୁଦ୍ର ଜୀବ ଦଳ,
ଦାରିଦ୍ର୍ୟ-ଧ୍ୱଂସ ପୁରେ ଶିକ୍ଷା କୌଶଳ ।
ସଂଯମ ଅଧ୍ୟବସାୟେ, ଦେବଯାନ ଦତ୍ତ,
ଫୁଲେ, ପୂଜି ଗୁରୁ ପଦ ହୋଇ ଅପ୍ରମତ୍ତ ।
ନୀଳକଣ୍ଠ ବାସୁଦେବ, ଗୋଦାବରୀ-ଈଶ,
ହରି-ହର ଆଦିଶକ୍ତି-ଧରଙ୍କ ଆଶିଷ ।
ଯୋଗାଏ ସେ ହୋମେ ଆଜ୍ୟ
ସବୁ ବ୍ୟର୍ଥ କରି,
ଉଠିଲା ଚିତାର ଶିଖା ଅମ୍ବର ଉପରି ।
ଅମାଅନ୍ଧକାର ଭେଦି ନିକୁଞ୍ଜ କାନନେ,
ବଲବୃଦ୍ଧି ଭସ୍ମ ହେଲା ସେ ତୀବ୍ରଦାହନେ ।

ଅନିଦ୍ର ଅଶ୍ରୁରେ କାନ୍ଦେ ଜ୍ୱାଳାମୟ ଶୋଷେ
ବର୍ତ୍ତି, ବେଲ ଭୁଲି ସ୍ନେହେ କୋଳେ ନେବ ଟାଣି ।
ଶୁଷ୍କ କଣ୍ଠେ ପଥ୍ୟ ଢାଳି ରଖିବ ଜୀବନ,
କେ ଅଛୁ ଦିଅ ଗୋ ସାଡ଼ା ଏହି ପୁଣ୍ୟଧାମେ ।
ଉପଯୁକ୍ତ ସାହା ଜାଣିଥିଲୁଁ ଯେଉଁ ଦେବେ,
ଝରି ଝରି ଝରେ ବର୍ଷା ଅମାଅନ୍ଧକାରେ ।

ଫୁଟିଥିବା ବକୁଳର ଘନଗନ୍ଧେ ଘେରା,
ନଭକୁଞ୍ଜକାନନେ ଜ୍ୱଳି ଉଠିଲା ସହସା ।
କର୍ପୂର ଚନ୍ଦନ ଚୂଆ ଧୂପ ପୁଷ୍ପଗନ୍ଧ,
ଆମର ଅଶ୍ରାର ଦୀପ ବଳି ସୁଖ ଶାନ୍ତ ।
ସେ ନମ୍ର ସ୍ନିଗ୍ଧ ହାସ୍ୟ, ସ୍ୱଚ୍ଛ ଦୀପ୍ତ ବାଣୀ,
ସହଜ ସତ୍ୟର ପ୍ରଭା, ଛନ୍ଦର ଶୁଶ୍ରୂଷା ।
ଜ୍ଞାନେ, ପ୍ରେମେ, ଦାନେ, କର୍ମେ ଅଜେୟ ତାପସ,
ତାହାର ଗରବେ କ୍ଷଣେ ହେଲା ଭସ୍ମସାର ।
ଶୀର୍ଣ୍ଣ ହାତେ ଶୁଷ୍କ ଗଣ୍ଡେ ନେତ୍ରୁ ବହେ ଧାର,
କରୁଣେ ବାହୁନି ଦୀନ କହେ ବାର ବାର ।
ଦରିଦ୍ର ଉତ୍କଳ ସତ ତଥାପି ତୋ ଘରେ,
ନାହିଁ ସେବା-ରତା ମାତା ଅଯତ୍ନେ ଘରରେ
ଜନମେ ମାଣ୍ଡିଆ, ଚନା, କ୍ଷୀଣ ଧାରେ ନଈ,
ସର୍ବ ଋତୁ ତଟପାଶେ ଯାଉଅଛି ବହି ।
ନିର୍ମଳ ପବନ ଅଛେ ସଦା ସର୍ବକ୍ଷଣ,
ଭବନେ ଗଗନେ ତୋର ମିଳେ ବିଲକ୍ଷଣ ।
ଗୋପବନ୍ଧୁ ଥିଲେ ଆମ ଦେଶ କର୍ଣ୍ଣଧାର,
ଝଡ଼ ଝଞ୍ଜା ସହି ନାବେ କରୁଥିଲେ ପାର ।
ଅମଳ ଧବଳ କୀରତିର ପଳ ହୁରୁଁ,
ଦେଖି ଚହୁଥିଲେ, ଆସୁଛି ଉତ୍କଳ ପୁରୁଁ ।
କୂଳବାସୀ ଜନେ ବନ୍ଦନ୍ତି ଅରଘ ଅର୍ପି,
ଆଜ ମା କାହାକୁ ସେ ସୁତେ ଦେଲୁ ସମର୍ପି ।

---

# ବିରହେ ସାନ୍ତ୍ୱନା ।

ରୂପ — କହନା କହନା କଥା
ପାଇବ ବିଷମ ବ୍ୟଥା
ହାୟରେ କଲଜା ମା'ର
ରୁଦ୍ଧ ବନ୍ଧ ଜଳାକାର
ହୋଇବ ପଲକେ,

ମେଘେ — ଗତ ବନ୍ୟା ଧୋୟା ଘରେ
କ୍ଳିଷ୍ଟ ପିଷ୍ଟ ସନ୍ତାନରେ
କେମନ୍ତେ ପାଳିବ, ଭ୍ରାନ୍ତ
ଶୁଣିଲା କେ ଅନ୍ତରାନ୍ତ
କହିଲା ଛଟକେ ।

ଏଣ୍ଡ୍ରୁଜଙ୍କୁ ଡାକ ଆଣେ
ରଖିବ ଭାଇଙ୍କି ଠାଣେ
ମା ତୋର ଆଶୀଷ ବଳେ
କ ଅସାଧ ଧରାତଳେ
କରନା ଭାବନା,

ପହିଲ ଅଷାଢ଼େ ଆଜ
ଅଶନ ପଡ଼ିଲା ଭାଜ
କହନା କହନା ତାହା
ଅଳୁଲେ ଏକହିଁ ରାହା
ବୁଡ଼ିଲା କହନା ।

ଧୀର — ଆରେ ଧୀର ଚନ୍ଦ ସବେ
ହଗନ୍ତ ଶୀହରା ରବେ

କହନା, ସରଳ୍ମ ମାଉ
ସୁଖ ଶାନ୍ତି ଅଶା ଛାଉ
ବୁଡ୍ଢଗଲ୍ମ ଭେଲା,

ଦେଖ ରଥେ ଦ୍ୱଜେ ଚଗନ୍ନ ଥ
ଏକାନ୍ତେ ମା ଯୋଡ଼ ହାତ
କହେ ଆସିଅଛ ହର
ଭବ ଦୁଃଖ ନେବ ହର
ଧନ୍ୟ ତୋର ଖେଲ !

ଅହା ଇଚ୍ଛା ପୂର୍ଣ୍ଣ ହେଉ ତୋର
ନେହୋଇବେ ନେତ୍ରୁଁ ଲୋର
ନା ନା ତୋତେ ଦେଖି ରଥେ
ପୁରାଇବ ମନୋରଥେ
ଯୁଗେ ଯୁଗେ ନାଥ,

ଭୁଯେ ପଥେ ପଥେ ଏହ୍ନପର
ଘୂରୁ ହବା ନିଶି ଭର
ଜଗ ଦୁଃଖ ହରିବାକୁ
ଜଗ ଜନେ ମୋହିବାକୁ
ବଢ଼ାଇବ' ହାତ ।

ଶୁଣ ଶୁଣ ଜନନୀ ବଚନ
ଧୈର୍ଯ୍ୟ ମାନ କରନା କ୍ରନ୍ଦନ
ଭାଇ ଭାଇ ଏକମେଲ ହୋଇ
ମନ ଜଗନ୍ନାଥ ପାଦେ ଥୋଇ

ଗୋ.ପବନ୍ଧୁ ଦାସ;

ପଦଚିହ୍ନ ଅନୁସରି
ଗଲେ ସର୍ବେ ଅଗ୍ରସରି
ଧନ୍ୟ ହେବ ଉତ୍କଳୀଙ୍କ ନାମ
ପୂର୍ଣ୍ଣ ହେବ ମା ଉତ୍କଳଙ୍କ ନାମ
ହୁଅନା ନିରାଶ

ନମେ କହନା ଅଶୁଭ କଥା
ପାଇବ ବିଷମ ବ୍ୟଥା
ବ୍ୟଥିତ କଳଜା ମା'ର
ଶୁଷ୍କ ବକ୍ଷ ଜଳାକାର
ଯଦି ହୁଏ କ୍ଷଣେ;

ଦେଖ ଦୁଃଖେ ନମିତ ଅମ୍ବର
ଧର ଉତ୍କଳ ଅମ୍ବର
କାନେ କହେ ଚୁପେ ଚୁପେ
ଅଶ୍ରୁ ଝରେ ଟୋପେ ଟୋପେ
ଲୁଚନ୍ତି କେଉଁ କୋଣେ ?

ଦେଖ ନଦୀମାନ ଶୋକେ ଫୁଲି
ଫେନିଲ ଲହରୀ ତୋଳି
ହା ହା ରବେ ପଡ଼େ ମୂର୍ଚ୍ଛି
ନବ ବଇଭବେ ଭୁଞ୍ଜି
ପ୍ରକୃତି ବିବଶା;

ଅନାଥ ଆତୁର ତୁଲ
ଦୁଃଖିନୀ ବିଧବା କୁଳ

ଛିରେ ହାଣି କଣ୍ଠଘାତ
ଉଠେ ଗ୍ରବେ, ଜଗନ୍ନାଥ
କ ହେବ ମୋ ଦଶା ।"

ହତ୍ନି — ଅଶ୍ରୁ ଅରଘ ଢାଳ ଗୋ
ପ୍ରୀତି ପ୍ରଦୀପ ଜାଳ ଗୋ
କର — ଶଙ୍ଖ ଧ୍ୱନି ହୁଳା ହୁଳି
ଦଅ — ଆଶୀଷ ବଚନେ ଢୋଳ
ଗୋଧଳି ଲଗନେ ;

ଅହା — ବନ୍ଧଗୋପବନ୍ଧୁ ହାସେ ।
ନେଲେ — ଅମରେ ଅମରାବାସେ ।
ଦେବେ — କ ଲାଗି ନୟନ ଝରେ ?
କ ଲାଗି ହୃଦୟ ଥରେ ?
ସେ ଦୀପ୍ତ ଆନନେ ।

ଏବେ — ଦେଖି ନାଥ ଜନ୍ମ ଶୋଧ
ହାୟ ଅଶ୍ରୁ କର ରୋଧ
ମାଗି ନାଥ ହାତ ପାତି
ସଂଯମ ଅନନ୍ତ ବାନ୍ଧ
ଉତ୍ସାହ ରତନେ,

ହାର — କୀର୍ତ୍ତି କୁସୁମ ମାଳା
ପ୍ରୀତି ସୌରଭ ବୋଳା
ଧରରେ ଯତନ କରି
ବିଶ୍ୱାସ ହୃଦୟେ ଭରି
(ସାର୍ଥକ) କର ରେ ଜୀବନ
(ଅକ୍ଷୟ) ଗୋଧୂଳୀ ଲଗନେ ।

# ପୁତ୍ରଶୋକେ ।

( ୧ )

ଗୋପବନ୍ଧୁ ପୁଣ୍ୟ ଧନରେ
କେଣେ ଛାଡ଼ିଗଲୁ          କେମନ୍ତେ ରହିଲୁ
ବାରେ ନ ଚିନ୍ତିଲୁ ମନରେ
ଗୋପବନ୍ଧୁ ପୁଣ୍ୟ ଧନରେ ।

( ୨ )

ଏହୁ କ ଛୋ ଯିବା ଷଣରେ
ଆସିଲା ବରଷା          ବୁଡ଼ିଲା ଭରସା
ସମ୍ଭାଳେ କେ ଛୋର ଉନ୍ନରେ
ଏହୁ କ ଛୋ ଯିବା ଷଣରେ

( ୩ )

ମୋର          ସାଗର ମନ୍ଥିଲା ଧନରେ
ଦେବତାର ବରେ          ପାଇଥିଲି ତୋରେ
ଛାଡ଼ ଯାଉ କାର ଶାପରେ
ହାୟ କଲି କେଉଁ ପାପରେ ।

( ୪ )

ଗୋପ ମୋ ଅମୂଲ୍ୟ ରତ୍ନରେ
ଭାଇ ଭଗ୍ନୀ ଲାଗି          ଧନ ଗୃହ ତ୍ୟାଗି
( ଖଣ୍ଟୁ ) ତୋତେ କେ ନ କରେ ଯତ୍ନରେ
ନ ଚିହ୍ନେ ଅମୂଲ୍ୟ ରତ୍ନରେ ।

( ୫ )

ଉଣେଇଶ ଶହ ଅଠରେ
ବନ୍ୟା ଯୋଗେ ହାୟ          ଦୁଃଖୀ ନିଃସହାୟ

( ୬ )

ମାସ ମାସ ବୁଲି ପ୍ରାନ୍ତରେ
ସାହାଯ୍ୟ କରିଲୁ ଅଣ୍ଟରେ !

( ୭ )

ଢୋଡ଼ଏ ସାଲର ନଅଶେ
ତୋର ଦୟା ବାହା ହୋଇଥିଲା ସାହା
ରଖିଲୁ ମୋତେ ସେ ସଂକଟେ ଠ
ହାୟ ଏତେ ଅତ୍ରୁ କେ ଖଟେରେ ।

( ୭ )

ପଚଶ ସାଲର ବନ୍ୟାରେ
ଅରେ ପୁଣ୍ୟବ୍ରତ ! ଦେଲୁ ସଦାବ୍ରତ
ତୋ ଲାଗି ଥିଲି ମୁଁ ଧନ୍ୟାରେ
ପୁଣି ସତେଇଶ ବନ୍ୟାରେ ।

( ୮ )

ଦ୍ୱିଗୁଣେ ଖଟଣି ଖଟିଲୁ
କରମରେ ପୁଣ୍ୟ ଧରମରେ ଧନ୍ୟ
ହନୁ ହନ ତେଜ ଉଠିଲୁ
ଦ୍ୱିଗୁଣ ଖଟଣି ଖଟିଲୁ

( ୯ )

(ଭୁଚ) ଅଳସ ନାରାଣ ନ ଜାଣୁ
ଦୁଃଖେ ବଇରାଗେ ନ ଗଣି ସରାଗେ
ସଭଙ୍କି କୋଳକୁ ଠାଣୁ ରେ
ଦୁଃଖିନୀ ମା ଲାଗି ଲଜ୍ଜା ଭଉ ମାଗି
ବାର ଦ୍ୱାରୁ ଧନ ଅଣୁରେ
(ଭୁଚ) ଅଳସ ନାରାଣ ନ ଜାଣୁ

( ୧୦ )

ବାଇଶ ସାଲର ଜୁନ
ଯେନ ଗଲ୍ ତୋରେ        ଜମ୍ସେଦ ବାସରେ
ଫେର ଅସିଥିଲ୍ ପୁଣ
·ଜର        ମୋ ଚନ୍ଦ୍ରାରେ ଦେହ ଖୀଣ ରେ

( ୧୧ )

ମୋହର ଦୁଃଖରେ ଦୁଃଖି
ରାଜ ସନମାନ        ସମ୍ପଦ ବମାନ
ଭୁଞ୍ଜେ ମୋ ସେବାରେ ସୁଖୀ
ମୋହର ଦୁଃଖରେ ଦୁଃଖୀ

( ୧୨ )

ଅନ୍ତର ଲଭୁଛି ମୋରରେ
ସତର ଜୁନରେ        ରାତ୍ରି ଅନ୍ଧାରରେ
ଯେନ ଗଲ୍ କେଉଁ ଦୂର ରେ
ଅନ୍ତର ନଭୁଛି ମୋର ରେ

ସମାପ୍ତ ।



କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ ।

